ଓଁ ଶ୍ରୀ ନୀଳକଣ୍ଠେଶ୍ୱର ଦେବାୟ ନମଃ ।

ମହାମାୟୀ ଦୁର୍ଗାଦେବୀ ଚରଣେ ଶରଣ,
ଆରମ୍ଭିଲି ଲେଖା ସଖି ବୃଷ ତେରଦଣ; ଜୀବଜୀବନ ରେ । ୧ ।
ମାର୍ଗଶୀର ମାସ ସନ ତେରଶ ପନ୍ଦର,
ଚନ୍ଦ୍ରବ ଭାଗଣ ରଜନୀ ଶେଷ ପ୍ରହର; ଜୀବଜୀବନ ରେ । ୨ ।
ତୋର ପତ୍ରଶ୍ରୀ ପାଇ ମନେ ହେଲି ସୁଖୀ,
ଫିଟାଇ ଚିଠି ଧଇର୍ଯ୍ୟ ନପାରିଲି ରଖି, ଜୀବ ଜୀବନରେ । ୩ ।
ମନେ ଅଶାନ୍ତର ହୃଦେ ଦମ୍ଭ ମୁଁ ବାନ୍ଧିଲି;
ନୟନ ନୀରକୁ ମାତ୍ର ରଖି ନପାରିଲି, ଜୀବ ଜୀବନରେ । ୪ ।
କାନ୍ଦିବାକୁ ସିନା କରିଅଛ ମନବନ୍ଧ;
ଦେଖାଇ ସରଗ ଚନ୍ଦ୍ର ନେଇଛି ହରାଇ ଜୀବ ଜୀବନରେ । ୫ ।
ଛଡ଼ାଇ ନେଇଛ ଦରିଦ୍ରକୁ ଦେଇ ଧନ,
ଫୋପଡ଼ନ୍ତୁ ଥାଳଦେଇ କ୍ଷୁଧାର୍ତ୍ତୀକି ଭାତ, ଜୀବ ଜୀବନରେ । ୬ ।
ସୁଖଦିନ ପକ୍ଷୀ କେଣେ ଯାଉଥିଲା ବନ୍ଧୁ,
ଦୁଃଖଦିନ ଯୁଗ ସମ ଲାଗୁଅଛି ସନ୍ଧ୍ୟ, ଜୀବ ଜୀବନରେ । ୭ ।
ଦିନା ରାତ୍ର ବସି ତୋର ଗୁଣକୁ ଗୁଣୁଛି,
ମରମ ବେଦନା ସହି ମରମେ ମରୁଛି, ଜୀବ ଜୀବନରେ । ୮ ।
ବନ ପୋଡ଼ିଗଲେ ଧନ ଜାଣନ୍ତି ସମସ୍ତେ,
ମନର ବେଦନା କେହି ନଜାଣେ ଜଗତେ, ଜୀବ ଜୀବନରେ । ୯ ।
ତୋଠାରୁ ଅଧିକ ଯାଣ୍ଟି ହୁଏ ମୋର ମନ,
ଜାଣିଲେ ଜାଣିବେ ଏକା ପ୍ରଭୁ ଭଗବାନ, ଜୀବ ଜୀବନରେ ।୧୦ ।
ନିନ୍ଦୁଛି କପାଳ ଧନ କାହାକୁ କହିବ,
ନିଜ କର୍ମକୁ ଦିନା ଅଦର ରହିବ, ଜୀବ ଜୀବନରେ । ୧୧ ।

ଯେଣେ ଅନାଇଲେ ତେଣେ ତୋର ଛବି ଦିଶେ,
ଚକ୍ଷୁ ବୁଜିଲେ ହୃଦୟ ମଧ୍ୟରେ ପ୍ରକାଶେ, ଜୀବ ଜୀବନରେ । ୧୨ ।
କି ମୋହନ ମନ୍ତ୍ରେ ହରି ନେଇଛୁ ମୋ ମନ,
ତୋ ରୂପ ତୋ କଥା ହେଉଛି ସର୍ବଦା ଧିଆନ, ଜୀବ ଜୀବନରେ । ୧୩ ।
ମନେ ପଡ଼ିଯାଏ ଧନ ତୋର ଧୀରଚାଲି,
ରହି ରହି ପଛକୁ ଚାହିଁବା ବୁଲି ବୁଲି, ଜୀବ ଜୀବନରେ । ୧୪ ।
ଭଙ୍ଗିମା ଅଧରେ ତୋର ସୁମଧୁର ହାସ,
ଦେଖିବା ପାଇଁକି ନେତ୍ରେ କରୁଥାଇ ଆଶ, ଜୀବ ଜୀବନରେ । ୧୫ ।
ଅଧରେ ବଂଶୀଲେ ସୁମଧୁର ଗାନ ଶୁଣି,
କର୍ଣ୍ଣେ ବାଜିଯାଏ ମୋର ତୋର ବଣାବାଣୀ, ଜୀବ ଜୀବନରେ । ୧୬ ।
ଅନାଅନି ସ୍ନେହକଥା ଭାବିଲେ ବେଳକୁ,
ବଜ୍ରାଘାତ ବିନା ଫାଟେ ଏ ମୋହର ବୁକୁ, ଜୀବ ଜୀବନରେ । ୧୭ ।
ଭାଗ୍ୟଶଶି ଉଦୟ କାଳରେ ମନ୍ଦବହ,
ଦୁଃଖଗ୍ରନ୍ଥ ପେଷି ତାକୁ ଦେଇଛି ଯୋଡ଼ାଘ, ଜୀବ ଜୀବନରେ । ୧୮ ।
ବିଚ୍ଛେଦ ଅନଳେ ପଡ଼ି ଦଗ୍ଧହୁଏ ପ୍ରାଣ,
ଶ୍ରେୟ ଅଟେ ମୃତ୍ୟୁ ଏ କଷଣୁ ଶତଗୁଣ, ଜୀବ ଜୀବନରେ । ୧୯ ।
ଭାବି ଭାବି ତୋ ଭାବକୁ ଜୀବ ମୋର ଯାଉ,
ରସିକ ସଂସାର କଥା ସୁଦୂରେ ଥାଉ, ଜୀବ ଜୀବନରେ । ୨୦ ।
କାହାରୁ କାହାକୁ ଅନ୍ତର କଲି କେଉଁ କନ୍ଦେ,
ସେ ଦୋଷୁଁ ଅନ୍ତର ହୋଇ ଅନ୍ୟଦେଶେ ଭ୍ରମ, ଜୀବ ଜୀବନରେ । ୨୧ ।
ମଣେ କୋଟିଯୁଗ ଯେଣେ ହେଲେ ଭୁ ଅନ୍ତର,
ଏକାହୋଇ ରହୁଛି ଘଡ଼ିକର ପଥର, ଜୀବ ଜୀବନରେ । ୨୨ ।
ରହିଛି କେବଳ ଏହୁଠାରେ ମୋର ଦେହ,
ମନ ତୋହଠାରେ ରହିଥାଏ ଅହରହ, ଜୀବ ଜୀବନରେ । ୨୩ ।
ଏକାହୋଇ ଧୋଇଥିଲି ବେଳେ ଦିନେ ଦିନେ,

ତୋର ପ୍ରେମଭାବ ଗୋଟି ପଡ଼ିଯାଏ ମନେ, ଜୀବ ଜୀବନରେ । ୧୪ ।
ପଳାଇଯାଇ ଦେଖିବାପାଇଁ ତୋର ମୁଖ,
ମନେ ହେଲେ ସୁଦ୍ଧା ରହେ ହୋଇ ମୁଁ ବିମୁଖ, ଜୀବ ଜୀବନରେ । ୧୫
ନୀର କ୍ଷୀରପର ଆମ୍ଭ ଅଭେଦ ପୀରତି,
ଅଜ୍ଞାନ ଲୋକ କରନ୍ତି ଦରବର ଭ୍ରାନ୍ତି, ଜୀବ ଜୀବନରେ । ୧୬ ।
ତୋହାର ସ୍ନେହଭାବ ପଡ଼ୁଅଛି ମୋର ମନେ,
ଜପାମାଳି କର ଜପୁଅଛି ଅନୁକ୍ଷଣେ, ଜୀବ ଜୀବନରେ । ୧୭ ।
ଯଦି ବା କେବେ ଭୁଲିତେ ଯାଇଥାଏ ମୁହିଁ,
ବସିଥାଉ ମୋର ଆଗମନ ପଥ ଚାହିଁ, ଜୀବ ଜୀବନରେ । ୧୮ ।
କାହାଠାରୁ ଶୁଣିଲେ ମୋ ଆସିବାର କଥା,
ଦୁଆରେ ଉଭାହୋଇ ଚାହୁଁ ନୁଆଇଁ ମଥା, ଜୀବ ଜୀବନରେ । ୧୯ ।
ଦୂରୁ ମୋତେ ଦେଖି ହସୁ କି ଅମୂଲ୍ୟ ହସ,
ଦିଶେ ନୀଳମେଘେ ଯେସନେ ଦାମିନୀ ପ୍ରକାଶ, ଜୀବ ଜୀବନରେ । ୨୦ ।
ନିକଟେ ପ୍ରବେଶ ହେଲେ ମୋର ହାତଧରି,
କହୁହେ ପାଖେଟି ନେଇ ଆସ ବୋଲିକରି, ଜୀବ ଜୀବନରେ । ୨୧
ଚାହିଁ ଥିବୁ ଯେପରି ମୋ ଯିବା ପଥକୁ,
ଜଣାଉଥିବୁ ବସି ଜଗନ୍ନାଥଙ୍କୁ, ଜୀବ ଜୀବନରେ । ୨୨ ।
ରହିଥିବୁ ସଖି ଅନାଥିନୀ ପରି ହୋଇ,
ବଞ୍ଚି ରହିଛି ଯାହା ମୁଁ ପ୍ରାଣ ଯାଉନାହିଁ, ଜୀବ ଜୀବନରେ । ୨୩ ।
ଭୁଞ୍ଜି ବସିଲେ ମୁଁ ପାଶେ ବସି ରହୁଥାଉ,
ନଅରୁ ଖାଇବା ଦ୍ରବ୍ୟ ପୁଣି ଆଣିଦେଉ, ଜୀବ ଜୀବନରେ । ୨୪ ।
ଭୋଜନ ଶେଷରେ ଜଳପାନ କରାଉଥାଉ,
ଉଠିଲାବେଳକୁ କହୁ ମୋର କରଧରି, ଜୀବ ଜୀବନରେ । ୨୫ ।
ମୋ ରାଣ ଅଛି ଭାତ ଦୋଟି ଖାଅ ଅଉ,

ନାହିଁ କଲେ ସ୍ନେହେ ହୃଦୟେ ଶୋଆଇ ଦେଉ, ଜୀବ ଜୀବନରେ ।୩୬।
ଏବେ ଖାଇଲେ ଖାଉଛି ନଖାଇଲେ ନାହିଁ,
ଖାଅବୋଲି କହିବାକୁ ଆଉ ନାହିଁ କେହି, ଜୀବ ଜୀବନରେ ।୩୭।
ଭୋଜନ ଶେଷରେ ଯାଇ ଭାଙ୍ଗି ଦଉ ପାନ,
ନିକଟକୁ ଯିବାପାଇଁ କରୁଥୁ ଆହ୍ୱାନ, ଜୀବ ଜୀବନରେ । ୩୮
ପଦସ୍ଥଳେ ତୋ ପାଖରେ ବସି ଭାଷୁ ଏହା,
ଡବ୍ବା ଠିପିଦିଅ ଖାଲି ଭାଙ୍ଗିଦିଅ ଗୁଆ,' ଜୀବ ଜୀବନରେ ।୩୯।
ଭାଙ୍ଗି ବସିଲେ ମୁଁ ତୋର କଥା ଅନୁଯାୟୀ,
ମୋ ହସ୍ତରୁ ଗୁଆ କାଢ଼ି ନେଉଥୁ ଛଡାଇ, ଜୀବ ଜୀବନରେ । ୪୦ ।
କହେ ଭାଙ୍ଗୁ ଥାଉ ଥାଉ ବୋଲିକରି ହଠ,
ହସ୍ତେ ଖଣ୍ଡେ ଦେଉ ମୁଖେ ଖଣ୍ଡେ ଦେଉ ନେଇ । ଜୀବ ଜୀବନରେ
ଦିନେ ତୋତେ ଯାଚି ଦେଇଥିଲି ମୁହିଁ ପାନ,
ମନେପଡ଼େ ହସି କହିଥିଲୁ ଯେ ବଚନ, ଜୀବ ଜୀବନରେ । ୪୨ ।
ବୋଲିଥିଲି ଉଧାର ରହିଲା ମୋର ଏହା,
ଅଧର ପାନଦାନେ ସୁଝିବୁ ଦେଣାଦେଣା, ଜୀବ ଜୀବନରେ । ୪୩ ।
କହିଥିଲୁ ରଖିଥାଅ ତୁମ୍ଭର ଚକଖି,
ଦାଲଣ ଭଗଲେ ନେବ ସୁଧ ମୂଳ ଲେଖି, ଜୀବ ଜୀବନରେ । ୪୪ ।
ମୁଁ କହିଲି କାମରାଜା ଆଗରେ ଗୁହାରି,
କରିବି ଦେଖିବା ଜଳଯିବୁ କପରି ? ଜୀବ ଜୀବନରେ । ୪୫ ।
ଏହାବୋଲି କୋଳ କରିଥିଲି ପଣ ସତ,
ମୁଖ ତଳେ ପୋଡ଼ି ରହିଥିଲ, ଗନ୍ଦମୁଁ ହିଁ, ଜୀବ ଜୀବନରେ । ୪୬ ।
ଦିବସରେ କେଳି ଅଣମ୍ଭି ଥିଲି ମୁଁ ତହୁଁ,
କହିଥିଲୁ ବିଧି ନଷେଧ ମାନଲୁ ନାହିଁ, ଜୀବ ଜୀବନରେ । ୪୭ ।
ମନେପଡ଼େ ଦିନେ କଣସାଇ ସୁବସ୍ନାନ,
ମୁଲ୍ଲୁବେ ଶ୍ରୀମୁଖ କରୁଥିଲୁ ଦର୍ଶନେ, ଜୀବ ଜୀବନରେ । ୪୮ ।

ସିନ୍ଦୁର କଜ୍ଜଳ ପେଡି ସମ୍ମୁଖରେ ଥୋଇ,
କପୋଳେ ସିନ୍ଦୁର ଟୋପା ଅଗେ ଦେଲ ନେଇ, ଜୀବ ଜୀବନରେ ।୪୯।
ଉଭେନ୍ଧ ବେଳକୁ ନେଇ କଜ୍ଜଳର ଗାର,
ସେ ସମୟେ ଯେସ୍ତାନେ ମୁଁ ହୋଇଲି ହାଜର, ଜୀବ ଜୀବନରେ ।୫୦।
ବୋଇଲ କଜ୍ଜଳ ପିନ୍ଧିବ ମୁଁ ହୁଏ ମନ,
ହସି କହିଥିଲ ପରା ଏବେ ଅଭିଅଣ, ଜୀବ ଜୀବନରେ ।୫୧।
ନାଇବା ପାଇଁ ତ ଅଣ କହିଥିଲି ତହୁଁ,
ସ୍ନେହେ ସ୍ୱହସ୍ତେ ମୋ ନେତ୍ରେ ଦେଇଛ ପିନ୍ଧାଇ, ଜୀବ ଜୀବନରେ ।୫୨।
ପୂର୍ବଦିଗେ ଦିନେ ଉଇଁ ଆସୁଥିଲେ ଭାନୁ,
ସେଦିନ ସେକଥା ମନେ ଗଲେ ଯିବ ମନୁ, ଜୀବ ଜୀବନରେ ।୫୩।
ସ୍ନାନ କରିବାକୁ ଯାଉଥିଲୁ ଏକା ହୋଇ,
ପଛୁ ମୁଁ ପହଞ୍ଚିଗଲି ସେ ସ୍ଥାନରେ ଯାଇ, ଜୀବ ଜୀବନରେ ।୫୪।
ବୋଇଲି କହିବା ଅଛ ଚତୁର୍ଥୀ ସ୍ନାହାନ,
ପ୍ରାର୍ଥନା କରି କହିଲୁ ମୋ ବଚନ ଘେନ, ଜୀବ ଜୀବନରେ ।୫୫।
ତଏ କେଣୁ ଆସିଯିବ ମାଉ ଅଛି ଡର,
ପ୍ରଣାମ କରୁଅଛି ହଟହଟା ନକର, ଜୀବ ଜୀବନରେ ।୫୬।
କହିଲି ନୋହିଲେ ନାଇଁ ମୋହର ଗାଧୁଅ,
ତୋ ସ୍ନାନ ସରିବା ଯାଏ ହୋଇଥିବ ଠିଅ, ଜୀବ ଜୀବନରେ ।୫୭।
ଉଠେ ଦେଲି ବୁଡ଼ା ମୁହୁଁରୁ ଫଣିଲ ଜଳେ,
ବୁଡ଼ିପାରି ଉଠି ଠିଆହେଲୁ ଯେତେବେଳେ, ଜୀବ ଜୀବନରେ ।୫୮।
ତୋ ଦେହରେ ପଡ଼ି ପାନମଣିଙ୍କ କିରଣ,
ରସାଣେଇ ସ୍ୱର୍ଣ୍ଣ ପ୍ରାୟେ ଝଟକିଲା ବର୍ଣ୍ଣ, ଜୀବ ଜୀବନରେ ।୫୯।
ସୂର୍ଯ୍ୟତେଜ ଖାଇ ଯେତେ ଦର୍ପଣର ଥାଇ,
ନୟନେ ପଡ଼ିଲେ ଝଲକା କରି ଦିଅଇ, ଜୀବ ଜୀବନରେ ।୬୦।
ସେହିପରି ବୁଝ ହୋଇଗଲା ମୋର ଆଖି,

ଅଉ ତୋ ଚନ୍ଦ୍ର ଶୋଭାକୁ ନପାରିବି ଦେଖି, ଜୀବ ଜୀବନରେ । ୬୧।
ଛଟି ପାଳଙ୍କଲ୍ ବଧୂ ହୋଇ ସାବଧାନ,
ଲୁଗୁଥିବା ପାଇଁ ତୋର ଜାନ ଲଳୁବନ, ଜୀବ ଜୀବନରେ । ୬୨ ।
ଗୁଗଣବଣଃଡ ବନ୍ଧୁଙ୍କ ପ୍ରଖର ପବନ,
ଉଡ଼ିଲା ଅଞ୍ଚଳ ଢାକ ଦକ୍ଷିଣଗନ୍ଧ ସ୍ତନ, ଜୀବ ଜୀବନରେ । ୬୩ ।
ଯାହା ଦେଖିବାର ଥିଲା ଦେଖିଲି ଦେଖିଲି,
କହୁଦେଇ ସେସ୍ଥାନୁ ମୁଁ ଅନ୍ତର ହୋଇଲି, ଜୀବ ଜୀବନରେ । ୬୪ ।
ହୋଇଥିଲା କୁମାରପୂର୍ଣ୍ଣିମୀ ସେହୁଦନ,
ସେଗୃହ ପଡ଼ିଲେ ମନେ ନେତ୍ର ବହେ ବନ, ଜୀବ ଜୀବନରେ । ୬୫ ।
ନୂତନ ବସନ ନୂଆକାଠ ଥିଲି ଆଣି,
ସ୍ନାନସାରି ତୁହେ ପ୍ରବେଶିଲ୍ ଯେଉଁକ୍ଷଣି, ଜୀବ ଜୀବନରେ । ୬୬ ।
ସ୍ୱହସ୍ତେ ପିନ୍ଧାଇ ଦେଲି ନୂତନ ବସନ,
ହସ୍ତଧରି ଖଟ୍ଟ ବସାଇଲି ହନ୍ଧିଧାନ, ଜୀବ ଜୀବନରେ । ୬୭ ।
ବୋଇଲି ବସ ମୁଁ ପିନ୍ଧାଇବି କାଠବାହୁ,
ଲଜ ଲାଜ ହୋଇ ବସିଥିଲୁ ଗୃନମୁହଁ, ଜୀବ ଜୀବନରେ । ୬୮ ।
କାଠ ପିନ୍ଧାଇ ସାରି ମୁଁ କରିଲି କନଣ,
ହାତଧରି ମାଗେ ଯାହା ଦେବୁ ଗୁଣବତୀ, ଜୀବ ଜୀବନରେ । ୬୯ ।
କହୁଥିଲି ଆଗେ ତୁହ୍ମ କର ଅଙ୍ଗୀକାର,
ବୋଇଲୁ ନଯ୍ୟୁନ କାହିଁ ଏ ପ୍ରାଣ ତୁମ୍ଭର, ଜୀବ ଜୀବନରେ । ୭୦ ।
ଯାହା ମାଗିବ ତା ଦେବ କଲି ସ୍ୱିକାର,
ଛଡ଼ଦଅ ଧରନାହିଁ ଅଉ ମୋର କର, ଜୀବ ଜୀବନରେ । ୭୧ ।
ଚନ୍ଦ୍ରକରେ ବବସନେ ଦନେ ଦେବୁ ରତ,
କହୁଦେଲି ଯହୁଁ ରହଗଲୁ ମୁଖ ପୋତ, ଜୀବ ଜୀବନରେ । ୭୨ ।
ଦଇବେ ଶରଦକାଳ ପୂର୍ଣ୍ଣମୀର ଇନ୍ଦୁ,
ତାହାରେ ସେଜ ସେଜାଇ କରିଲୁ ଶୟନ, ଜୀବ ଜୀବନରେ । ୭୩

ତୋ ଶଯ୍ୟନ ସ୍ଥାନେ ପଦାସ୍ଥଗଲି ମୁଁ ଯାଇଁ
ବୋଲିଥିଲି ଅଙ୍ଗୀକୃତ ଦ୍ରବ୍ୟ ଦିଅ ସହି, ଜୀବ ଜୀବନରେ । ୭୪ ।
ଭୁଲିଦେଲୁ ଯାହା ଇଚ୍ଛା ତାହା କର କହି,
ବିବସନେ ପୁରତ ଆରମ୍ଭିଲି ମୁଁ ତହିଁ, ଜୀବ ଜୀବନରେ । ୭୫ ।
ରତାନ୍ତେ ବସନ ପିନ୍ଧି ଘରକୁ ତୁ ଗଲୁ
ଲଜ୍ୟା ବଶତ ମୋ ପାଶେ ରହି ନପାରିଲୁ, ଜୀବ ଜୀବନରେ । ୭୬ ।
ସେହି ତୁ ଧନ, ସେ ତନ୍ତ୍ର, ସେହି ମୁଁ ବଞ୍ଚିଛି,
ଏବେ ସେକଥାତ ସାତ ସ୍ୱପନ ହୋଇଛି, ଜୀବ ଜୀବନରେ । ୭୭ ।
ଶଯ୍ୟନ କକ୍ଷକୁ ସଖି ଯେତେବେଳେ ଯାଉ,
ଯତନେ ଅଞ୍ଚଳେ ବସ୍ତ୍ର ବାନ୍ଧି ନେଇଥାଉ, ଜୀବ ଜୀବନରେ । ୭୮ ।
ମୋ'ପାଶେ ପ୍ରବେଶ ହେଲେ ଅଞ୍ଚଳୁ ଫିଟାଇ,
ସମର୍ପଣ କରୁ ମୋ ହସ୍ତରେ ତାହା ନେଇ; ଜୀବ ଜୀବନରେ । ୭୯ ।
ଦିନେ ଏକୁଟିଆ ଖାଇଦେଇ ଥିଲି ମୁହିଁ,
କହିଥିଲୁ ଏକା ଖାଇଲ ମୋତେ ନଦେଇ, ଜୀବ ଜୀବନରେ । ୮୦ ।
ସୁଖଦାୟିନୀରେ ସେହିଦିନୁ ଏହାକଲୁ;
ଅଧେ ତୋହପାଇଁ ରଖି ଅଧେ ମୁଁ ଭୁଞ୍ଜିଲି, ଜୀବ ଜୀବନରେ । ୮୧ ।
ପ୍ରଥମେ ପାଦ ମଞ୍ଜାଳୁ ମୋର ପ୍ରତିଦିନ,
ତାହାପରେ ସଖି ଯାଇ କରୁ ତୁ ଶଯ୍ୟନ, ଜୀବ ଜୀବନରେ । ୮୨ ।
ମନେ ପଡ଼ିଯାଏ ଯେତେବେଳେ ସବୁ କଥା,
ଜନ୍ମାଇଦିଏ ହୃଦରେ ମୋର ମହାବ୍ୟଥା, ଜୀବ ଜୀବନରେ । ୮୩ ।
ପ୍ରଦୀପ ଲଗାଇ ଦିନେ କରିବାକୁ ପ୍ରୀତ,
କହିଥିଲି ଯେତେ ନାହିଁ କଲୁ ଗୁଣବତୀ, ଜୀବ ଜୀବନରେ । ୮୪ ।
ବଳାତ୍କାରେ ପ୍ରୀତିକଲି ପ୍ରଦୀପ ଲଗାଇ,
ବୁଜିଥିଲୁ ଆଖି ମୋ ମୁଖେ ଦୃଷ୍ଟି ନଦେଇ, ଜୀବ ଜୀବନରେ । ୮୫ ।
ରତିଶେଷେ ଘର୍ମ୍ମ ବୋହିଥିଲୁ ଶ୍ରମପାଇ,

ଅଶନ ଦେଇ ପୋଷୁଥିଲୁ ସେ ଝିଅଙ୍କ ଭୁକ୍ତ, ଜୀବ ଜୀବନରେ ।୮୬।
ବଡ଼ ହୋଇଲାବେଳକୁ ବାଡାପୂନ ନେଇ,
ନିଜେ ବଞ୍ଚୁଥିଲୁ ମୋ ହସ୍ତୁ ନେଇ ଛଡ଼ାଇ, ଜୀବ ଜୀବନରେ ।୮୭।
ଅନନ୍ତ ବ୍ରତ ଉପାସ କଥା ପଡ଼େ ମନେ,
ଯାହା ଘଟୁ ଯାଉଅଛୁ ଏ ଭାଗ୍ୟରେ ବନେ, ଜୀବ ଜୀବନରେ ।୮୮।
ପୂଜା ଶେଷରେ ପ୍ରସାଦ ଥାଳୀରେ ସଜାଡ଼ି,
ଖାଇବାପାଇଁ ନ ବସାଇଲ ମୋତେ ଭଣ୍ଡି, ଜୀବ ଜୀବନରେ ।୮୯।
କହୁଥିଲି ଏବା କେବେ ମୁଁ ଖାଇବି ନାହିଁ,
ଆସ ଦୁହେଁ ଭୋଜନ କରିବା ସଙ୍ଗହୋଇ, ଜୀବ ଜୀବନରେ ।୯୦।
କହୁଥିଲୁ ଏ ହଟକୁ ମୁଁ ପାରିବ ନାହିଁ,
ମୁଁ ଯେବେ ନଖାଇଲେ ତୁ ବସିଥିଲୁ ଖାଇ, ଜୀବ ଜୀବନରେ ।୯୧।
ଅନୁରୋଧ କଲୁ ତୁମ୍ଭେ ଆଗ ଖାଅବୋଲି,
ନଖାଇ ମୁଁ ଆଗ ତୁ ଖାଇବାକୁ ବୋଇଲି, ଜୀବ ଜୀବନରେ ।୯୨।
ନଛେ ଆଗ ନଖାଇବୁ ଇଁ ଛଞ୍ଜି କଲୁ,
ଖାଅ ବୋଲିକରି କହୁ ମୋ ମୁଖରେ ଦେଲୁ, ଜୀବ ଜୀବନରେ ।୯୩।
ଖାଇସାରି ପରେ ତୋତେ ଦେଲି ମୁଁ ଭୁଞ୍ଜାଇ,
କହୁଥିଲି ପଞ୍ଚଗ୍ରାସୀ ପରି ହେଲା ସହୁ, ଜୀବ ଜୀବନରେ ।୯୪।
ଅଭିମାନେ ଅଳ୍ପବଳ୍ପ ଜୀବର ଜୀବନ,
ପୁଣି ପଞ୍ଚଗ୍ରାସୀ ପାଇଁ ହେଲାଣିକି ମନ, ଜୀବ ଜୀବନରେ ।୯୫।
ମୁଁ ମଲେ ପୁଣି ନୂତନ ବିବାହ ହୋଇବ,
ସୁଖେ ବସି ପଞ୍ଚଗ୍ରାସ ତାସଙ୍ଗେ କରିବ, ଜୀବ ଜୀବନରେ ।୯୬।
ଅଭିମାନ ଦେଖି ତୋର କହୁଥିଲି ଏହା,
ମାଗୁଅଛୁ ଦୋଷ କ୍ଷମାକର ପ୍ରେମଦେହା, ଜୀବ ଜୀବନରେ ।୯୭।
ମୁଖେ ଚୁମ୍ବଦେଇ କହୁଥିଲୁ ହସି ହସି,
ଦୋଷମାଗ କାହାକୁ ମୁଁ ପରା ତୁମ୍ଭ ଦାସୀ, ଜୀବ ଜୀବନରେ ।୯୮।

ଚଉଠିଶା ଦିନ ତୁମ୍ଭେ ଦୋଇଙ୍କର ସଙ୍ଗ,
ଯାଇଥିଲେ ଦେଖିବାକୁ ଧବଳେଶ୍ୱର ଲିଙ୍ଗ, ଜୀବ ଜୀବନରେ । ୯୯ ।
କଥାଅଛୁ ନୂଆ ବୋହୂ ଦେଉଳେ ପଶନ୍ତି,
ମୁଣ୍ଡିଆ ମାରନ୍ତି ଯେଣ୍ଠା ଶୁଭ ହେଏ ଚିନ୍ତା, ଜୀବ ଜୀବନରେ । ୧୦୦ ।
ଦେଖିଲି ଓଲଟାକଥା ତହୁଁ ଶଶୀହାସି,
ପ୍ରଣାମ କରିଲୁ ଭୁଜ ମୋ ଶୁଭ ମନାସି, ଜୀବ ଜୀବନରେ । ୧୦୧ ।
ନତ ମସ୍ତକରେ ଜଣାଇଥିଲୁ ଶମ୍ଭୁଙ୍କୁ,
ଚରକବୀ କରୁଥାଅ ପ୍ରଭୁ ମୋ ପ୍ରଭୁଙ୍କୁ, ଜୀବ ଜୀବନରେ । ୧୦୨ ।
ତୋ ପ୍ରାର୍ଥନା ଯେନ ପ୍ରଭୁ ଅଛନ୍ତି ବଖାଇ,
କନ୍ଧୁ ସ୍ଥାଣବନା ପିଣ୍ଡପଣ ଅସ୍ତ୍ର ରହୁ, ଜୀବ ଜୀବନରେ । ୧୦୩ ।
ଶ୍ରୀ ପଞ୍ଚମୀ ଦିନ ଦିନେ ଅରେ ଘନକେଣୀ,
ସଜୁଥିଲୁ ବେଶ ଏବା ନର୍ତ୍ତନରେ ବହି, ଜୀବ ଜୀବନରେ ୧୦୪।
ସମ୍ମୁଖେ ଦର୍ପଣ ଥୋଇ ମୁଣ୍ଡୁ ଲୁଗା କାଢ଼ି,
ବସିଥିଲୁ ଚାରଣି ଯେସ୍ନ କେଶ ସଜାଡ଼ି, ଜୀବ ଜୀବନରେ । ୧୦୫ ।
ଦେଖି ମୁହିଁ ପଛୁ ଅଛ ସାବଧାନ ହୋଇ,
ଗଲି ଯେଉଁ ପଥ ତୁ ଜାଣି ପାରିନୁ ନାହିଁ, ଜୀବ ଜୀବନରେ ।୧୦୬।
ହୋପାଣେ ନପଡ଼ୁଣୁ ଦର୍ପଣେ ମୋର ଛାଇ,
ପଡ଼ିଗଲା ଦେଖି ଅଛି ବରବର ହୋଇ, ଜୀବ ଜୀବନରେ । ୧୦୭ ।
ମୁଣ୍ଡେ ଲୁଗା ଦେଇ ଉଠି ହୋଇଗଲୁ ଠିଆ,
ନଜରେ ପ୍ରବେଶି କହିଥିଲି ପର ଏବା, ଜୀବ ଜୀବନରେ । ୧୦୮ ।
ଦେଖିସାରନ୍ତ ଉତ୍ତାରୁ ମାନ୍ୟ କଣ୍ଢା ଏବେ,
ବସ ବାନ୍ଧଦେବ ବେଣୀ ଅଙ୍କ ମୁଁ ସ୍ୱହସ୍ତେ, ଜୀବ ଜୀବନରେ ।୧୦୯
କହିଥିଲୁ ଭଉଣି ବୁଲୁଥାଅ ମୋର ଗଇ,
ସୁବିଧା ପାଇଲେ ବସ କି ହଣ୍ଡ ଉଥଇ, ଜୀବ ଜୀବନରେ । ୧୧୦ ।
ଏପର କଥାକୁ ମୁଁ ପାଉବ ନାହିଁ ଅଉ,

ମୋ ବେଣୀ ସାଜିବା ପକ୍ଷେ ଏହୁଠାରୁ ଥାଉ, ଜୀବ ଜୀବନରେ ।୧୧୧
ଅତ୍ୟନ୍ତ ମାଳତୀରେ ମାଳ ଅଟେ ମିଳି ତନ୍ତୁ,
ତଥାଗଲି କୋଳେ ଭୃଙ୍ଗ ମୃଗେ ଚନ୍ଦ୍ର ଦେଇ, ଜୀବ ଜୀବନରେ ।୧୧୨।
ସ୍ୱହସ୍ତେ କେଶ ଶାଗୁଁଳୀ ବେଣୀ ବାନ୍ଧୁଥିଲି,
ଶିରପରେ ସ୍ୱର୍ଣ୍ଣ କେତକୀ ଖଞ୍ଜିଦେଲି, ଜୀବ ଜୀବନରେ । ୧୧୩ ।
ଏବେ ଯାହାଡାକ୍ତା ତାହା କରୁଥାଅ ବୋଲି,
କହିଦେଇ ସେସ୍ଥାନୁ ମୁଁ ଆସିଥିଲି ଚାଲି ଜୀବ ଜୀବନରେ । ୧୧୪।
ଦୋଳ ପୂର୍ଣ୍ଣିମା ଦିନ ମୋ ସଙ୍ଗେ ଜୀବଧନ,
ଫଗୁଖେଳ କରିବାକୁ କରିଥିଲୁ ମନ, ଜୀବ ଜୀବନରେ । ୧୧୫ ।
ମିଶାଇ ଚନ୍ଦନ ଚୂଆ ଅଗର କସ୍ତୁରୀ,
ଫଗୁଗୋଳ ମାରୁଥିଲୁ ପଗ ପିଚକାରୀ, ଜୀବ ଜୀବନରେ । ୧୧୬ ।
ଛାଡ଼ଯାଇଛୁ ସେ ଦାଗ ବସନ ଦେହରୁ,
ଜୀବଥିବାଯାକେ ନଲିଭିବ ହୃଦପୁରୁ, ଜୀବ ଜୀବନରେ । ୧୧୭ ।
ଉଦ୍ୟାନ ବିହାର ପଡଯାଏ ମୋର ମନ,
ଦିନେ ଭ୍ରମଣେ କରିଲୁ ମୋ ସଙ୍ଗେ ଗମନ, ଜୀବ ଜୀବନରେ ।୧୧୮।
ଉଦ୍ୟାନର ଶୋଭା ଦେଖି ମନେ ହୋଇ ଖୁସି,
ହସ୍ତେ ହସ୍ତ ଛନ୍ଦି ବୁଲୁଥିଲୁ ମହାଲକ୍ଷ୍ମୀ, ଜୀବ ଜୀବନରେ, । ୧୧୯ ।
ଏଥେକ ବସନ୍ତକାଳ ମଳୟ ସମୀର,
ଦକ୍ଷିଣ ଦିଗରୁ ବହୁଥିଲା ଧୀର ଧୀର, ଜୀବ ଜୀବନରେ । ୧୨୦ ।
ସେହି ଉଦ୍ୟାନରୁ ନେତ୍ରଆଗେ ଯାଏ ଦିଶି,
ଯେଉଁ ବୃକ୍ଷମୂଳେ ସଙ୍ଗ ହୋଇ ଥିଲେ ବସି, ଜୀବ ଜୀବନରେ ।୧୨୧।
ତାହୁଁ ଆରିଲି ତନ୍ଦ୍ରା ମୋ ନୟନରେ ଆସି,
ଶୋଇଥିଲି ଶିରତୋର ଜାନୁରେ ଲଗେଇ, ଜୀବ ଜୀବନରେ ।୧୨୨।
ଏ ସମୟେ କ୍ରୋଧଡାଳୁ କୋକିଳ ସ୍ୱରକୁ,
ମୋ ଭୁକ୍ତଦାନରେ ମୋର ନିଦ୍ରା ଭାଙ୍ଗିଗଲା; ଜୀବ ଜୀବନରେ ।୧୨୩।

ଝୁଠି ବୋଲୁଥିଲୁ ଏତେକାଳ ସବୁ ଶୁଣି,
କାମେ ଅସ୍ଥିର ମୋ ମନ ଚଞ୍ଚଳ କରଣୀ, ଜୀବଜୀବନରେ ।୧୨୫।
ମାଗେବାରେ କଥ ଏହିଠାରେ ପ୍ରତିଷ୍ଠାନ,
ନୋହିଲେ ରହିବ ନାହିଁ ମୋର ଏକୀକନ, ଜୀବଜୀବନରେ ।୧୨୬।
ବୋଲୁଥିଲୁ କାମ ଏକା ଅଟଇ ତୁମ୍ଭର ?
ସାମାନ୍ୟ କଥାରେ କଣ ଦେଖୁଛି ଅସ୍ଥିର ଜୀବଜୀବନରେ ।୧୨୭
କହୁଅଛ ଏହା ସେନା ପାଶେ ଅଛି ବୋଲି,
ରହନ୍ତ କପର ଏକା ଅଟେଇଲ ଭୁଲି ଜୀବଜୀବନରେ । ୧୨୮ ।
ମୁଁ ବୋଇଲି ରହିଥାନ୍ତି କର୍ମକୁ ଅଦର,
ଅବଶେଷ ଅଜଗର କଷ୍ଟେ ଥାଏ ଯେପର, ଜୀବଜୀବନରେ ।୧୨୯।
କ୍ଷୁଧାର୍ତ୍ତି ପାଶରେ ଯେତେବେ ଅନ୍ନ ରହିଥିବ ,
ନଖାଇଲେ ସଖି କେବେ ସମ୍ଭାଳ ହୋଇବ , ଜୀବଜୀବନରେ । ୧୩୦।
ଏହାବୋଲି ବଳବ୍ତାରେ କୋଳକର ତହୁଁ,
ସେ ଭାବ ହୃଦେ ରହିଛି ଝନଗାର ହୋଇ, ଜୀବଜୀବନରେ । ୧୩୧।
ଦମନକ ଚତୁର୍ଦ୍ଦଶୀ ଦିନ ମଦାଳସୀ ,
ଲାବଣ୍ୟ ବଢ଼ ପଢ଼ୁଥିଲୁ ପଲଙ୍କେ ବସି, ଜୀବଜୀବନରେ । ୧୩୨
ଏଣିକିଯୁଗରେ ଲୁଚି ଶୁଣୁଥିଲି ମୁହିଁ,
ବରଷ ବର୍ଷା ବର୍ଣ୍ଣିନ ପଢୁଥିଲୁ ସହି, ଜୀବଜୀବନରେ । ୧୩୩ ।
ପତିସାଙ୍ଗ ଯଥା ସ୍ଥାନେ ଥୋଇ ଦେଇବହି,
ବାହାର ଅଇଲୁ ଘର ବାହାରକୁ ସହି, ଜୀବଜୀବନରେ । ୧୩୪ ।
ଦେଖି ବୋଲେ ହସି ଦେଇଥିଲି ହେମଦେହା
ତେଜ ପ୍ରତିମା ପରାଏ ହୋଇଗଲୁ ଠିଆ, ଜୀବଜୀବନରେ । ୧୩୫ ।,
ଦେଖୁଛି ବହୁତ ଚଳପତ୍ର ଚମ୍ପାଗୋଟି,
ଶୋଭି ନାହିଁ ଶବନ୍ତ କେହି ତୋର ଛବିପରି, ଜୀବଜୀବନରେ, ।୧୩୬।
କହିବ କାହାକୁ ସହି ମୋ କର୍ମ ଲିଖନ,

ଇନ୍ଦ୍ର ସମ୍ପଦ ପାଇ ଦରିଦ୍ର ହେଲେ ସ୍ଥାନ; ଜୀବଜୀବନରେ ।୧୩୭।
କେବେ ସୁଭାଗ୍ୟ ହୋଇବ ଦେଖିବି ତୋ ମୁଖ,
କୋଳେ ବସାଇ ଦୂର କରିବ ଏ ମୋ ଦୁଃଖ, ଜୀବଜୀବନରେ ।୧୩୮।
ଦୟାକରରେ କେବେବା ପ୍ରଭୁ ତ୍ରିଲୋଚନ,
ଶୁଣିବି ତୋ ମୁଖୁଁ ସେହୁ ଅମୃତ ବଚନ, ଜୀବଜୀବନରେ ।୧୩୯।
ଲେଖି ନ ପାରଇ ଆଉ ହୃଦୁ ଉଠେ କ୍ରୋଧ,
ଖଣ୍ଡି ହାସି ମାସେ ଅଛ ଧୈର୍ଯ୍ୟ ଧର ଋଦ୍ର; ଜୀବଜୀବନରେ ।୧୪୦।
ଏ ଭୁବନ ମୋହନୀରେ ଜଳତା ମାସରେ
ନିଶ୍ଚୟ ଯାଇ ପହୁଞ୍ଚିବି ମୁଁ ତୋ ପାଶରେ; ଜୀବଜୀବନରେ ।୧୪୧।
ଯଣାଉଥା ଦୁଃଖ ହର ନେବେ ଦୟାମୟ,
ତୋହର ବିଦେଶୀ ଜାନ୍ତୁ ନେଉଛି ବିଦାୟ, ଜୀବଜୀବନରେ ।୧୪୨।




Printed by A. C. Chakraverty Orissa Printing Works
Puri 1932.

# ମୁଆଁକଥା

ଶ୍ରୀମାନ୍ ବୀରକିଶୋର ରାୟଙ୍କ ପ୍ରଣୀତ ।

## ଆମ ଆଈମାଆଙ୍କ କାହାଣୀ ।

ମନୋହର ଗଳ୍ପ ଗୁଚ୍ଛରେ ଭରା । ଯୁବକ, ଯୁବତୀ, ବାଳକ ବାଳିକାମାନଙ୍କ ଆଦରର ଧନ । ଏଥି ପୂର୍ବରୁ ଏପରି ଓଡ଼ିଆ ଭାଷାରେ ଏତେ ସ୍ୱଚ୍ଛ ଗଳ୍ପ ପୁସ୍ତକ ବାହାର ନଥିଲା । ଅଜା ଆମ୍ଭର ଗଳ୍ପପ୍ରିୟ ଭାଇ ଭଉଣୀଙ୍କର ଗଳ୍ପ ପ୍ରତି ଆଦର ଦେଖି ଏହି ନବୀନ ପୁସ୍ତକଟି ପ୍ରକାଶ କରିବା ପାଇଁ ମନୋନୀତ କରିଅଛୁ । ଥରେ ହାତ ପଢନ୍ତୁ । କିପରି ଆନନ୍ଦ ଅନୁଭବ କରିବେ ତାହା ଫଳରେ ବୁଝି ପାରିବେ । ଘଢ ।

ପ୍ରକାଶକ
ଖର୍ଦ୍ଦ ସେନାପତି
ଅର୍ଦ୍ଧଚାଣ ପୁସ୍ତକଭଣ୍ଡାର
ଗ୍ରାଣ୍ଡରୋଡ଼
ପୁରୀ